

ଟ ୨.୦୦

ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ



# ଟିକି ବୁଢ଼ୀଟି

ମାର୍ଗାରେଟ ଭଟ୍ଟି

ଅଳଙ୍କରଣ
ଦେବବ୍ରତ ସରକାର

1992 (ଶକାବ୍ଦ 1914)

ISBN 81-237-0121-7
Little Old Woman *(Oriya)*
ଟ 9.00
ନିର୍ଦ୍ଦେଶକ, ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ, ଏ - 5,ଗ୍ରୀନ୍ ପାର୍କ,
ନୂଆ ଦିଲ୍ଲୀ - 110016 କର୍ତ୍ତୃକ ପ୍ରକାଶିତ ।

ନେହେରୁ ବାଳ ପୁସ୍ତକାଳୟ

# ଟିକି ବୁଢ଼ୀଟି

ମାର୍ଗାରେଟ ଭଛି

ଅଳଙ୍କରଣ
ଦେବବ୍ରତ ସରକାର

ଅନୁବାଦ
ଦିଲୀପ କୁମାର ଶତପଥୀ





ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

ଦିନେ ଟିକିବୁଢ଼ାଟି କହିଲା, "ମେଣ୍ଢା କିଣିବା ପାଇଁ ପର୍ବତ ତଳକୁ ଯିବା ପାଇଁ ମୁଁ ଭାବୁଛି ।" ଟିକିବୁଢ଼ୀ ସାଙ୍ଗେ ସାଙ୍ଗେ ଜିନିଷପତ୍ର ବାନ୍ଧିବା ନେଇ ଖୁବ୍ ଚିନ୍ତିତ ହୋଇ ପଡ଼ିଲା । ବୁଢ଼ା ତ କେବେହେଲେ ଘରୁ ବାହାରକୁ ଯାଇନି । ଏବେ ତାକୁ ଛୋଟ ବୁଢ଼ା ଘୋଡ଼ାଟିକୁ ନେଇ ପୁରା ବାରଦିନ ଧରି ଯିବାକୁ ପଡ଼ିବ ।

ବୁଢ଼ୀଟି ଚାଉଳ, ଅଟା, ଚିନି, ପିଆଜ, ଆଳୁ, ମସଲା ଓ ଲୁଣ ଆଦି ଏକାଠି କରିବାକୁ ଲାଗିଲା । ଏପରିକି ରାତି ଅଧରେ ଉଠି ଆହୁରି ଅଧିକ ଜିନିଷପତ୍ର ତା'ର କୁଡ଼ିଆ ମଝିରେ ଏକାଠି ସଜାଡ଼ି ବସିଲା ।



ନିଆଁ ପାଖରେ ଶୋଇଥିବା ଟିକିବୁଢ଼ୀଟି ଖଡ଼ଖଡ଼ ଶବ୍ଦ ଶୁଣି ପାଟିକରି ଉଠିଲା, "ମତେ ଶୋଇବାକୁ ଦେବୁ ନା ନାଇଁ ?"

ତା'ପରେ ଟିକିବୁଢ଼ୀଟି ଶେଯ ଭିତରେ ଶୋଇବାକୁ ଚେଷ୍ଟା କଲା । କିନ୍ତୁ ହଠାତ୍ ଉଠିପଡ଼ି ଜିନିଷପତ୍ର ଘଣ୍ଟାଘଣ୍ଟି ଓ ଲୁଗା କମ୍ବଳ ଆଦି ଗୁଡ଼ାଇବାରେ ଲାଗି ପଡ଼ିଲା ।



"ସବୁ ଜିନିଷପତ୍ର ଭିତରେ କାଠ ହାଣିବା ପାଇଁ କୁରାଢ଼ୀଟାଏ ତ ନିହାତି ଦରକାର", ବୁଢ଼ୀ ଭାବିଲା । ଥରିଥରି କହିଲା, "ହିମାଳୟରେ ଥିବା ଭାଲୁର ମୁକାବିଲା ପାଇଁ କୁରାଢ଼ୀଟି ବି ଦରକାର ତ ।"

ପୁଣି ଗୁଣୁଗୁଣୁ କରି ଟିକିବୁଢ଼ୀ କହିଲା, "ଜିଗମେ ତାତା ଯେତେବେଳେ ପର୍ବତ ତଳକୁ ମେଣ୍ଢା କିଣିବା ପାଇଁ ଯାଇଥିଲେ, ସେ ସମୟରେ ତାଙ୍କ ଛାତିକୁ ଭାଲୁ ରାମ୍ପୁଡ଼ି ଦେଇଥିଲା ।"

ବର୍ତ୍ତମାନ ଆଉ ଟିକିବୁଢ଼ାଟି କୌଣସି ପ୍ରକାରେ ଶୋଇ ପାରିଲାନି । ସେ କହିଲା, "ହୁଏତ ମୁଁ କାଲି ଯାଇ ପାରିବିନି ।"

"ନିର୍ବୋଧ ! ମେଣ୍ଢା ଚମଡ଼ାରେ ତିଆରି ଜାକେଟ ଭିତରେ ମୋର ଲୁହା କଡ଼େଇଟି ବାନ୍ଧି ଦେଉନୁ ?" ସେ ପାଟିକରି କହିଲା ।

ବୁଢ଼ୀ ପଚାରିଲା, "ତୁମେ କ'ଣ ଦର୍ଜୀ ଭାଇଙ୍କ କଥା ମନେ ରଖିନ ? ସେ ଯେତେବେଳେ ପର୍ବତ ତଳକୁ ମେଣ୍ଢା କିଣିବା ପାଇଁ ଯାଇଥିଲେ, ତାଙ୍କ ଉପରେ ମାଟି ଅତଡ଼ା ଧସି ଯାଇଥିଲା ଓ ସେ ମରି ଯାଇଥିଲେ ।"

"ତେବେ, ତୁମେ ମୁଣ୍ଡରେ ମୋର ଖୋଳ କରେଇକୁ ବାନ୍ଧି ପକାଇବ ଏବଂ ନିଜକୁ ମାଟି ଅତଡ଼ା ଭିତରୁ ବାହାର କରିବା ପାଇଁ ସାଙ୍ଗରେ ଗୋଟିଏ କୋଦାଳ ନେଇ ଯାଇଥିବ ।"

ଯେତେବେଳେ ଟିକିବୁଢ଼ାଟିର ଯିବା ସମୟ ଆସିଲା, ସେମାନେ ତାଙ୍କ ଛୋଟ ଘୋଡ଼ାଟି ଦେହରେ ସବୁ ଜିନିଷପତ୍ର ଲଦିଦେଲେ । ବୁଢ଼ାଟି ଗୋଟିଏ କାନ୍ଧରେ କୁରାଢ଼ୀ ଓ ଅନ୍ୟ କାନ୍ଧରେ କୋଦାଳଟିଏ ଧରି ବାହାରି ପଡ଼ିଲା । ଛାତିରେ ତାହାର ଭଜା କରେଇଟିକୁ ବାନ୍ଧିଛି ଏବଂ ମୁଣ୍ଡରେ ଖୋଳ କରେଇଟି ପିନ୍ଧିଛି,

ଯାହାକି ତାର କାନ୍ଧକୁ ବି ଘୋଡ଼ାଇ ରଖିଛି । ପାହାଡ଼ିଆ ରାସ୍ତାରେ ତାର ଛୋଟ ଘୋଡ଼ାଟିକୁ ଛାଡ଼ିବା ବେଳେ ସେ ଚାରି ଆଡ଼କୁ ଚାହିଁ ଦେଖିଲା ।

ଅଧମାଇଲ ରାସ୍ତା ଗଲା ପରେ ବୁଢ଼ା ଶୁଣିଲା, "ରୁହ ! ରୁହ !" ପଛରେ ଟିକିବୁଢ଼ୀଟି ଧାଇଁଛି । ଧଇଁସଇଁ ହୋଇ ଟିକିବୁଢ଼ୀଟି ବୁଢ଼ା ପାଖରେ ପହଞ୍ଚି କହିଲା, "ତମ୍ବୁ ପାଖରେ ନିଆଁ ଜାଳିବା ପାଇଁ ଏଇ ତୁମର ଚକମକି ପଥର ; ଆଉ ଏଇଟି ତୁମର ଛତା । ପାହାଡ଼ିଆ ରାସ୍ତାରେ ସବୁବେଳେ ବର୍ଷା ଲାଗି ରହିଥାଏ । ତୁମେ ଭିଜି ଯିବ ।"



ବୁଢ଼ାର ଜାମା ପଛରେ ଛତାଟିକୁ ବୁଢ଼ୀ ଟାଙ୍ଗିଦେଲା । "ଏବେ ମଧ୍ୟ ମୁଁ କିଛି ଜିନିଷ ଭୁଲିଗଲି । କିନ୍ତୁ କ'ଣ ?" ବୁଢ଼ୀ କହିଲା ।

ଖୋଳ କରେଇ ଭିତରୁ ମୁଣ୍ଡକାଢି ବୁଢ଼ା କହିଲା, "ମନେ ନକରିବା ହିଁ ଉଚିତ ହେବ । ଆଉ ଅଧିକ କିଛି ବୋହିଲେ ମୋ ପ୍ରାଣ ଚାଲିଯିବ ।"

"ଯାଅ ତା ହେଲେ !" ବୁଢ଼ୀ କହିଲା, "ଘାଟି ପୂର୍ବରୁ କିନ୍ତୁ ମନେ କରି ପର୍ବତ ଦେବତାଙ୍କୁ ଲୁଣ ଚଢ଼େଇବ, ନହେଲେ ସେ ରାଗି ଯିବେ ।"



ସେଇ ରାତିରେ ବୁଢ଼ା ତମ୍ବୁ ପକାଇ, ନିଆଁ ଜାଳି, ଚା ଓ ଖାଦ୍ୟ ତିଆରି କରି ଆରାମରେ ଶୋଇବା ପାଇଁ ନିଜକୁ ଉଷୁମ କରିନେଲା ।

ଘରେ ଟିକିବୁଢ଼ୀଟି ସବୁଯାକ କଥା ମନେ କରି, ନିଜେନିଜେ ମୁରୁକି ହସିବାରେ ଲାଗିଲା । କିନ୍ତୁ ବୁଢ଼ାକୁ ଆହୁରି କିଛି ଜିନିଷ ଦେବାକୁ ଭୁଲି ଯାଇଛି ବୋଲି, ମନେ ପକାଇବାକୁ ଚେଷ୍ଟା କଲା । ହେଲେ କ'ଣ ସେ ଜିନିଷ ?



ପ'ର ଦିନ ଛୋଟ ଘୋଡ଼ାଟି ସହ ନିରାପଦରେ ଦିନଟି ବିତାଇବା ପରେ ଟିକିବୁଢ଼ାଟି ମାଟି ଅତଡ଼ାର ସାମ୍ନାସାମ୍ନି ହେଲା । ଓଃ ! ଇସ୍! କାଦୁଅ ଭଳି ବରଫଗୁଣ୍ଡସହ ଛୋଟ ବଡ଼ ସବୁପ୍ରକାରର ପଥରଖଣ୍ଡମାନ ଖସିବାରେ ଲାଗିଲା ।

ଠକ୍ ! ଠାକ୍ ! ଟକ୍ ! ଧସ୍ ଧସ୍ ! ବୁଢ଼ୀ ଦେଇଥିବା ଖୋଳ କରେଇ ଉପରେ ପଥରଖଣ୍ଡମାନ ପଡି ପୁଣି ଉଠିବାରେ ଲାଗିଲା । କିନ୍ତୁ ଟିକିବୁଢ଼ାଟିର ମୁଣ୍ଡ ନିରାପଦରେ ରହିଲା । ବୁଢ଼ା ଅତି ସହଜରେ ନିଜକୁ ପଥରଗଦା ଭିତରୁ ବାହାର କରି, ନିରାପଦରେ ଆଗେଇବାକୁ ଲାଗିଲା ।



ତୃତୀୟ ଦିନର ଯାତ୍ରାବେଳେ, ଟିକିବୁଢ଼ାଟି ହିମାଳୟର ଭାଲୁକୁ ଭେଟିଲା । ଆଃ ! ଓଃ ! ଗାଉଁ ଗାଉଁ ହୋଇ, ଦାନ୍ତ ଦେଖାଇ ଭାଲୁଟି ବୁଢ଼ା ଆଡ଼କୁ ଧାଇଁଲା । ଭୟରେ ବୁଢ଼ାର ପାଦ ଦି'ଟା କାଲୁଆ ହୋଇ ଆସିଲା । କୁରାଢ଼ୀଦ୍ୱାରା ଭାଲୁ ଉପରକୁ ଆକ୍ରମଣ କରିବାକୁ ଚେଷ୍ଟାକଲା । ହେଲେ ବୁଢ଼ାର ହାତ ରବର ଭଳି ହୋଇ ପଡ଼ିଥିବାରୁ ସେ ବିଶେଷ କିଛି କରିପାରିଲାନି । ପ୍ରବଳ ବୋଝ ବୋହି ଥିବାରୁ, ଭାଲୁଟି ଅତି ସହଜରେ ଧୀରେ ଧୀରେ ଚାଲୁଥିବା ବୁଢ଼ା ପାଖରେ ପହଞ୍ଚିଗଲା ।

"ବିଚରା ଜିଗମେ ଚାଚା ଭଳି ମତେ ବି ମରିବାକୁ ପଡ଼ିବ'," ବୋଲି ଭାବି ବୁଢ଼ା ଅଧା ଅଚେତ ହୋଇ ପଡ଼ିଲା । "ବିଦାୟ ଟିକିବୁଢ଼ୀ !" ତା ପାଟିରୁ ବାହାରି ଗଲା ।



କିନ୍ତୁ ଭାଲୁ ଟିକିବୁଢ଼ାକୁ ଆଘାତ କରିପାରିଲାନି । ବୁଢ଼ୀର ସେହି କରେଇରେ ନଖ ମାରିବା ଫଳରେ ଭାଲୁର ନଖ ଭାଙ୍ଗିଗଲା ଏବଂ ଖୋଳ କରେଇରେ ବାଡ଼େଇ ହୋଇ ଭାଲୁର ଦାନ୍ତବି ଭାଙ୍ଗିଗଲା । ଶେଷରେ ଭାଲୁଟି ଡ଼ରି ପଳେଇ ଗଲା ।


ଚତୁର୍ଥଦିନ ଟିକିବୁଢ଼ା ଓ ତାର ଘୋଡ଼ା ଗୋଟିଏ ଗଭୀର ନଈ ପାଖରେ ପହଞ୍ଚିଲେ । ଉଭୟ କଡ଼ରେ ଥିବା ଦୁଇଟି ଦେବଦାରୁ ଗଛକୁ ଯୋଡ଼ି ଦୁର୍ବଳ ପଟା ତିଆରି ଗୋଟିଏ ପୋଲ ସେଇ ନଈ ଉପରେ ରହିଥିଲା । ପଟାଗୁଡ଼ିକ ଖୁବ୍ ପୁରୁଣା । ଅତ୍ୟଧିକ ଓଜନ ଯୋଗୁଁ ଟିକିବୁଢ଼ା ଓ ତାର ଘୋଡ଼ାକୁ ସମ୍ଭାଳି ନପାରି ପଟାଗୁଡ଼ିକ ଭାଙ୍ଗି ପଡ଼ିଲା । ଉଭୟେ ନଈ ସୁଅରେ ଖସି ପଡ଼ିଲେ ଓ ଭାସିଗଲେ ।

ପର୍ବତ ଉପରକୁ ଉଠି ସେହି ରାସ୍ତାଦେଇ ଆସୁଥିବା ଲୋକମାନଙ୍କୁ ଟିକିବୁଢ଼ୀ ପଚାରୁଥିଲା, "ମୋର ସ୍ୱାମୀ ଓ ତାଙ୍କର ଘୋଡ଼ାକୁ ଦେଖିଛ କି ?"

ଜଣେ କହିଲା, "ହଁ, ମାଟି ଅତଡ଼ା ଭିତରୁ ବିନା କଷ୍ଟରେ ବାହାରି ଆସିବା ପରେ ମୁଁ ତାଙ୍କୁ ଦେଖିଛି ।"

ଅନ୍ୟ ଜଣେ କହିଲା, "ହଁ । ଗୋଟିଏ କଳାମଚମଚ ଭାଲୁ ସହ ଲଢ଼େଇରେ ଭାଲୁର ନଖ ଓ ଦାନ୍ତ ଭାଙ୍ଗି ସାରିଲା ପରେ ତାଙ୍କୁ ମୁଁ ଦେଖିଥିଲି ।"

ତୃତୀୟ ଜଣକ କହିଲା, "ଘାଟି ଆଗରୁ ପର୍ବତ ଦେବତାଙ୍କୁ ଲୁଣ ଚଢ଼ଉଥିବା ବେଳେ, ତାଙ୍କ ସହ ମୋର ଦେଖା ହୋଇଥିଲା ।"

ଚତୁର୍ଥଜଣକ କହିଲା, "ଘାଟିରେ ଯାଉଥିବା ବେଳେ ପ୍ରବଳ ବର୍ଷାରେବି ଟିକିବୁଢ଼ାଟି ଭିଜି ନଯାଇ, ଆରାମରେ ଛତା ଖୋଲି ଯାଉଥିଲା ।"





ଶେଷଯାତ୍ରୀ ଜଣକ କହିଲା, "ନା! ମୁଁ ସେମାନଙ୍କୁ ଭେଟି ନାହିଁ । ହେଲେ ପୋଲ ଉପରେ ଦୁଇଟି ଗାତ ଦେଖିଲି । ଗୋଟିଏ ଗାତ ତୁମର ଟିକିବୁଢ଼ା ଭଳି ଓ ଅନ୍ୟ ଗାତଟି ତାଙ୍କର ଟିକି ଘୋଡ଼ାଟି ଭଳି ।"

"ଆହା !" ଟିକିବୁଢ଼ୀଟି ଜୋରରେ କାନ୍ଦିବାକୁ ଲାଗିଲା । "ସେମାନେ ନଈ ଭିତରେ ପଡ଼ିଗଲେ କିନ୍ତୁ ପହଁରି ପାରିଲେନି ! ଏବେ ଜାଣିଲି ମୁଁ କି ଜିନିଷ ଭୁଲି ଯାଇଥିଲି ।"

ତାପରେ ଟିକିବୁଢ଼ୀଟି ପବନ ଭର୍ତ୍ତି ମେଣ୍ଢା ଚମରେ ତିଆରି ଚାରୋଟି ଥଳୀ ନେଇ ଆସିଲା । ଏହି ଥଳୀ ସାହାଯ୍ୟରେ ନଈ ପାର କରାଯାଏ । "ବହୁତ ଡେ଼ରିରେ ଜାଣିଲି !" ବୁଢ଼ୀ କାନ୍ଦି ପକାଇଲା ।

ଅନେକଦିନ ବିତିଗଲା । ଦିନେ ରାତିରେ ଟିକିବୁଢ଼ୀଟି ନିଆଁ ପାଖରେ ଅତି ଦୁଃଖରେ ବସିଥିବା ବେଳେ, କବାଟରେ ବଡ଼ ଜୋର ଶବ୍ଦ ଶୁଣିଲା । ବୁଢ଼ୀ କବାଟ ପାଖରେ ଯାଇ ଦେଖିଲା, ଟିକିବୁଢ଼ାଟି ଥଣ୍ଡାରେ ଥକି ଯାଇ ଭୋକରେ ଠିଆ ହୋଇଛି । ଟିକିବୁଢ଼ୀର ଖୁସି କହିଲେ ନ ସରେ !



ବୁଢ଼ା ଖାଇସାରି ଆରାମ କଲାପରେ, ତାର କାହାଣୀ ଶୁଣାଇଲା । "ମୋ ଦେହନର ବନ୍ଧା ହୋଇଥିବା ଓଜନିଆ ଜିନିଷ ଗୁଡ଼ିକ ଯୋଗୁଁ ନଈ ଭିତରେ ଥିବା ଦୁଇଟି ଖମ୍ବ ମଝିରେ ମୁଁ ଅଟକି ରହିଗଲି ।" ଯଦି ମତେ ଗାଈ ଜଗାଳୀ ପିଲାମାନେ ଉଦ୍ଧାର କରି ନଥାନ୍ତେ , ମୁଁ ଏବେ ମଧ୍ୟ ସେଇଠି ହିଁ ଥାଆନ୍ତି । କିନ୍ତୁ ଆମର ବୁଢ଼ା ଘୋଡ଼ାଟି ମରିଗଲା ।"

"ଏଇ ମେଣ୍ଢା ଚମରେ ତିଆରି ଥଳୀଦ୍ୱାରା ତୁମେ ହୁଏତ ରକ୍ଷା ପାଇ ଯାଇଥାନ୍ତ," ଟିକିବୁଢ଼ୀ କହିଲା ।

"ଛାଡ଼ ସେ କଥା, ଯଦି ତୁ ଆଗରୁ ଆମ ଉପରେ ଏତେ ବୋଝ ଲଦି ନଥାନ୍ତୁ, ତେବେ ହୁଏତ ଆମେ ପୋଲ ଉପରୁ ଖସି ନଥାନ୍ତୁ ।"

"ଆଉ ଯଦି ସବୁଯାକ ଜିନିଷ ତୁମେ ନେଇନଥାନ୍ତ, ତେବେ ହୁଏତ ସେ ପୋଲ ଯାଏ ବି ପହଞ୍ଚି

ପାରି ନଥାନ୍ତ,'' ବୁଢ଼ୀ କହିଲା, "ଆଉ ହଁ ! ତୁମ ଦେହରେ ଯଦି ଏତେ ଜିନିଷ ବନ୍ଧା ହୋଇ ନଥାନ୍ତା, ତେବେ ସେ ଦୁଇଟି ଯାକ ଖମ୍ବ ମଝିରେ ତୁମେ ଅଟକି ଯାଇ ପାରି ନଥାନ୍ତ ।''

ଏହିପରି ଭାବରେ ଟିକିବୁଢ଼ା ଓ ବୁଢ଼ୀ ତାଙ୍କର ବାକି ଜୀବନ ସାରା କଥା କଟାକଟି ହେଲେ ।

ମେଣ୍ଢା କିଣିବାକୁ ପର୍ବତ ତଳକୁ ଯିବା ପାଇଁ ସେମାନେ ଆଉ କେବେ ଭାବି ନାହାନ୍ତି । ଅବଶ୍ୟ ବୁଢ଼ାଟି ଗାଁର ଶିଶୁମାନଙ୍କୁ, ତାର ଅଭିଯାନ ସମ୍ପର୍କରେ କାହାଣୀମାନ କହୁଥିଲା ।

"ଜିଗମେ ଟାଟା ଓ ଦର୍ଜୀ ଭାଇଙ୍କଠୁଁ ମୁଁ ବଡ଼ବୀର । ମୋର କାହାଣୀ କହିବା ପାଇଁ ମୁଁ ତ ଜୀବନ୍ତ ଫେରି ଆସି ପାରିଲି । ଚମଡ଼ା ଥଳୀକୁ ନେଇ ନଈ ପାରି ହେବା କଥା ତ ? ଫୁଃ ! ମତେ ସେ ଗୁଡ଼ାକ ଦରକାର ପଡ଼ିନି । ନୁହେଁ କି ?''



Printed at BANKERS PRESS, New Delhi-28